# JEEBAN CHAMPOO.

BY

DAMODAR PATNAIK.

---

# ଜୀବନ-ଚମ୍ପୂ ।

---

ଶ୍ରୀ ଦାମୋଦର ପଟ୍ଟନାୟକଙ୍କ କର୍ତ୍ତୃକ

ରଚିତ ।

---

CUTTACK,

Printed by the Cuttack Printing Company.

1888.

ମୂଲ୍ୟ ୦ • ⁄ ଦୁଇଅଣା ମାତ୍ର ।

# ଜୀବନ–ଚମ୍ପୂ ।

## ମନ ପ୍ରତି ବିବେକର ଉକ୍ତି ।

ରାଗ ବିଭାସ ଗୁଜ୍ଜରୀ । ତାଳ ଝୁଲା ।

[ ସର୍ବସିଦ୍ଧି ଏହି କବିଙ୍କ ବୃତ୍ତରେ ]

କରୁନାହୁଁ କିପାଁ ଭାବନା । ପକ୍ଷୀ ଏ ପ୍ରାଣ ସିନା । ପଦ ।
ମନରେ, ଶରୀର ପିଞ୍ଜରା ଦିନେ କରଣ ଚୂନା ;
ବନ୍ଧୁବାନ୍ଧବ ଛାଡ଼ିଣ, ନଷ୍ଟେ ଉଡ଼ିଯିବ ପ୍ରାଣ,
ଦେଖିବା ହେବ ସ୍ୱପନ ଯେତେ କରୁଥିଲେ ଶୋଚନା । ୧ ।
ମନରେ, ପ୍ରଭୁପାଖରେ କରିବ ସବୁ ଘୋଷଣା;
ଜଗତର ଉପକାର, ଅମ୍ଳୋଚିତ ସଦାଚାର,
ନ ଦେଇ ଫଳ ସୁସାର ଯେତେ ଦେଉଥିଲୁ ଯନ୍ତ୍ରଣା । ୨ ।
ମନରେ, ଯାହାତ ହେଲାଣି ଏବେ କର ବାସନା ;
ଯେତେକ ଅବଶିଷ୍ଟଦିନ, ହେବ ସୁକର୍ମରେ ଲୀନ,
ପରକାଳର ସ୍ମରଣ ଘୋର ନ କରିବ ବେଦନା । ୩ ।

---

## ବୈରାଗ ଜୀବନର ଉକ୍ତି ।

ରାଗ ଘୋଡ଼ୀ ପରଜ । ଆଡ଼ତାଳୀ ।

[ ତର ଚାହିଁ କ ହେ ବୃତ୍ତରେ । ]

ଖଳ ସଂସାରରେ ବୃଥା ସବୁ ମୋର ମୋର;
ଗୃହ ଗଲା ଦିନ ପିଣ୍ଡୁ ଏ ପରାଣ କେହି ନୋହିବେ କାହାର । ପଦ ।
ଏଡ଼େ ସୁକୁମାର, ଏହି ଯେ ଶରୀର, ଯାକୁ ଅମୂଲ୍ୟ ଆଦର;
ହେବ ନାରଖାର, ଦଣ୍ଡକେ ଅସାର, ଭସ୍ମମାତ୍ର ଏକାସାର । ୧ ।
ପ୍ରାଣବନ୍ଧୁଗଣ, ଯାଙ୍କୁ ଅନୁକ୍ଷଣ, ଧର ବୁଲଇ ସଂସାର ;
କର ହାହାରବ, ହୋଇବେ ନୀରବ, କେହି ନ ଯିବେ ସଙ୍ଗର । ୨ ।

ଧନ ପରିଜନ, ରଥ ଅଶ୍ୱଗଣ, ହୋଇବେ ଲୀଳା ଅନ୍ତର ;
ଧର୍ମ ସଙ୍ଗେ ଯିବ ଆଉ କେ ନ ଯିବ ଚିନ୍ତ ମନ ପ୍ରଭୁ ଈଶ୍ୱର । ୩ ।

ପଥଭ୍ରଷ୍ଟ ଲୋକ ପ୍ରତି ବିବେକର ଉକ୍ତି ।

ରାଗ କାମୋଦୀ । ଏକତାଲୀ ।

[ଯେନାଇ ଅଧେ ଯେତେ କହିଲୁଁ ବୃତ୍ତରେ ]

ଗୋପନେ କଥା ଥରେ ଭାଳିଲୁଁ ରେ, ପାପ ଯନ୍ତ୍ରଣା ଏବେ ସହିଲୁ ରେ । ଦେଖି ଦେଖି ଝୋଟିଲ୍ଲ କେବେହେଁ ନ ଯୁଝିଲ୍ଲ ଜାଣି ସ୍ୱହସ୍ତେ ବିଷ ପିଇଲୁ ରେ । ପଦ ।

ଦିନକୁ ଦିନ ସିନା ଧର୍ମେ ହେଲୁ ବିମନା ପାପକଥାରେ ମନ ମୋହିଲୁରେ । ଶୟନ ଭ୍ରମଣରେ ଅସନ ଭୋଜନରେ ରହସ୍ୟ-ଲୀଳାମୃତ ଜାଣିଲୁଁ ରେ । ୧ ।

ସାଧୁଜନ ସଙ୍ଗମ ଏବେ ଭଲ ନ ମଣ ଜ୍ୱରେ ଅରୁଚି ଯେପରି ଖାଇ-ଲୁ ରେ । ଦଣ୍ଡକେ କ ବିଷମ ହେଲ୍ଲ ପଙ୍କିଳ ମନ ଥରେ ଏକାନ୍ତେ ଭୁ ନ ଚିନ୍ତିଲୁଁ ରେ । ୨ ।

କର କୁତ୍ସିତ ସଙ୍ଗ କଲୁ ବହୁତ ରଙ୍ଗ ମାନ ମର୍ଯ୍ୟାଦା ସବୁ ନାଶିଲୁ ରେ । ପଛେ ହୋଇ ଆତୁର ବୂଲନ୍ତେ ବାରଦ୍ୱାର ଅପଣା-କୃତକର୍ମ ସ୍ମରିଲୁ ରେ । ୩ ।

ଧର୍ମଜୀବନର ଅହ୍ୱାନ ।

ରାଗ କାଶ୍ମିରୀ—ଖେମଟା ।

ଯେନାଇଁ ଡାକୁଛି ଭାଇ ଆସ ପୂଜିବା ମହେଶ;
ସନ୍ତାପ ହାରୀ ସେ ଦେବ ନାଶିବେ ମାନସକ୍ଲେଶ । ପଦ ।
କରଣ ପବିତ୍ର ମନ ବୋଳ ପ୍ରେମର ଚନ୍ଦନ ।
ଗାଇବା ମଧୁର ସ୍ୱରେ ସର୍ବେ ଦୟାମୟ ନାମ । ୧ ।
ଝଙ୍କାରଣ ବୀଣାଯନ୍ତ୍ର କମ୍ପାଇବା ହରମନ୍ତ୍ର ।
ମୋହିବା ଜଗତବାସୀ ନେଇ ସେହି ଯନ୍ତ୍ର ମନ୍ତ୍ର । ୨ ।

ଗାଅ ଯେତେ ନରନାରୀ ଅଛ ଜଗତରେ ପୂର୍ଣ୍ଣ ।
ସବେ ଈଶ୍ୱର ନାମ ଜୟ ଜୟ ଧ୍ୱନି କରି । ୩ ।

---

## ଭକ୍ତର ଉକ୍ତି ।

ରାଗ ମୋହନା । ଆଡ଼ତାଳ ।

[ତୁହିଁକି ନାହିଁ କେହି ମୋହନହାସ ବୃତ୍ତରେ]

କି ମାଗିବୁ ତେବେ କହ ,ମହେଶ ସ୍ନେହେ । ପାପନାଶନ ସ୍ନେହ
ଏକା କି ମୋତେ ଅବା କାହିଁକି କହ ହେ । ପଦ ।
ମୋହନରୂପ ଦେଖି ପ୍ରାଣବନ୍ଧୁ ଉପେକ୍ଷି ।
କିଏସେ ନ ତେଜଇ ସଂସାରମୋହ ହେ । ୧ ।
ଗୁଡ ବିଷୟସୁଖ ନ ମଣି କିସ ଦୁଃଖ ।
ଭ୍ରମି ନାହିଁ କେ ବନେ ତାହାଙ୍କ ସହ ହେ । ୨ ।
ଭୟଙ୍କର ବିପଦ ଦେଖିବେଲେ ସମ୍ପଦ ।
କିଏ ବା ନ ଡାକଇ ପାଇ ବିଗ୍ରହ । ୩ ।
କେବା ଗୁଣ ତାଙ୍କର ହୃଦବୀଣାସଙ୍ଗର
ଗାଇ ନାହିଁ ପ୍ରେମରେ ଲୋତକସହ ହେ । ୪ ।

---

ସାୟଂ—କାଳ ଦର୍ଶନେ ଜୀବନର ଆତ୍ମଜ୍ଞାନ—

ରାଗ ଧନାଶ୍ରୀ ।

ଗଳିଲ ଗଲା ଦିନ ସନ୍ଧ୍ୟା ଆଗମନ ଅହୋ କି ଛବି ସୁନ୍ଦର ।
ବିହଙ୍ଗମକୁଳ ହୋଇ କୁତୁହଳ କରନ୍ତି ଗାନ ପ୍ରଚୁର ।
ରେଚିତ୍ତ । କିପାଁ ବିଷୟ ସୁଖେ ମୋହିତ । ୧ ।
ଆସୁ ଦିବାକର ଯିବାକୁ ପ୍ରଖର ନ ଚଳିଲ ନିଜ ହିତ
ମୃତ୍ୟୁ ଅନ୍ଧକାରବେଶେ ଭୟଙ୍କର ପୋଟି ଆସଇ ତ୍ୱରିତ ।
ହେ ଭାଇ । କିଆଡ଼ ଲାଗି ଚିନ୍ତା କଲ ନାହିଁ । ୨ ।

ବିଷୟ ସୁଖରେ ମାତି ସଦାବେଳେ ବୁଡ଼ାଉଛ ପୁଣ୍ୟବଳ ।
ଚଳିଁଗଲା ଦିନ ହୋଇବ ସ୍ମରଣ ନାଛ 'ବିଷମୟ ଫଳ ।
ହେ ସଖା । ପ୍ରଭୁ ବିନା ଆଉ ନାହିଁ ରକ୍ଷା ହେଁ । ୩ ।
ଏ ଭବସାଗର ହେବାକୁ ଉଦ୍ଧାର ସେହି ମାତ୍ର କର୍ଣ୍ଣଧାର ।
ତାଙ୍କ ପାଦେ ଚିତ୍ତ ଦେଇ ଅବିରତ ହୁଅ ନିର୍ଭୟ ଏଥର ।
ରେ ଚିତ୍ତ । ମାୟାସଂସାରୁ ହୁଅ ବିରତ । ୪ ।
ତାଙ୍କ ସହବାସ କଲେ ଅହର୍ନିଶ ହୋଇବ ପାପମୋଚନ ।
ଫିଟାଇଣ ଦ୍ୱାର ସ୍ୱରଗଧାମର ଡାକନେବେ ନିରଞ୍ଜନ ।
ରେ ମନ । କରୁଥାଅ ସଦା ତାଙ୍କୁ ଧ୍ୟାନ । ୫ ।

---

ପାପିପ୍ରତି ବିବେକବାଣୀ ।

ତାଳ ଛକ୍କ ।

ଖତରେ ଗଲାଣି ଗଳ ପାପଶର ଭାଇ ରେ ।
ଅନାଥନାଥଙ୍କୁ ପ୍ରାଣେ ଡାକ ଏବେ ଯାଇଁ ରେ । ପଦ ।
ଧନ ମାନ ଯଉବନ ଲୁଟାଇଲୁ ଅକାରଣ ।
କି ଯଶ ପାଇଲୁ ଲୋକହସା ବିନା ତୁହି ରେ । ୧ ।
ସୁଖରାଜ୍ୟ ଭୋଗକାଳେ ପୁଣ୍ୟ ତୁଚ୍ଛ କଲୁ ଭୋଳେ ।
ଈଶ୍ୱରପାଦକମଳେ ନ ଦେଇ ଯା ମତିରେ । ୨ ।
ରୋଗ ଶୋକ ପରିତାପ ହୋଇଯାଉଛି ଅମାପ ।
ପ୍ରାର୍ଥନା କର ହରିଙ୍କି ଯିବ ସବୁ ଖତ ରେ । ୩ ।

---

ଧର୍ମ ଭାବ ପ୍ରବେଶେ ବିଷୟିଜନର ଖେଦୋକ୍ତି ।

[ ନବଘନ ଶ୍ୟାମସୁନ୍ଦର ବୃତ୍ତରେ ]

ତାଳ ପଦ୍ମପଠ ।

ଜୀବନ କାନନ ନାମ । ନାହିଁ ନୋହିଲା ପୁଣ୍ୟ ଆଶ୍ରମ । ପଦ ।

ନ ଚଞ୍ଚଳ-ମାୟାସଂସାର, ପରନିନ୍ଦା ପରବିଶ୍ୱର ।
ବିଷୟ-ଗର୍ତ୍ତରେ ପ୍ରତିମୁହୂର୍ତ୍ତରେ ପଡ଼ି ହଜାଉଛୁ ଦିବ୍ୟଜୀବନ ।୧।
ରିପୁଗଣ ପଶୁଭୀଷଣ, ଯହିଁ କରୁଛନ୍ତି ଭ୍ରମଣ ।
ପଶୁରାଜ-ମନ ହୋଇଣ ଅଧୀନ କରୁଅଛୁ ସଦା ସ୍ୱାର୍ଥସାଧନ ।୨।
ଅସାଧୁତା ପକ୍ଷିନିକର, ବସି ସ୍ନେହ-ବୃକ୍ଷ ଉପର ।
ଗାଉଛନ୍ତି ଗୀତ ହୋଇ ଆନନ୍ଦିତ ସାଧୁ ସଙ୍ଗ କର ନାହିଁ ମନନ ।୩।
ଦୀନ କରୁଅଛୁ ଜଣାଣ, ପ୍ରଭୋ ବାରେ ହୁଅ ପ୍ରସନ୍ନ ।
ହେଉ ସେହି ବନ ଶାନ୍ତିତପୋବନ ଯହିଁ କରୁଥିବୁ ତୁମ୍ଭଙ୍କୁ ଧ୍ୟାନ ।୪।

---

## ବିବେକ ବାଣୀ ।

### ରାଗ ମୁଖାରୀ ।

[ ଏ କି ବିପରୀତ ରଙ୍ଗ ବୃନ୍ଦରେ ]

ଝୁଣ୍ଟି ତୁ ପଡ଼ିବୁ ଦିନେ । ରେ ବନ୍ଧୁଅ । ବୃକ୍ଷୁ ପଡ଼ାଇ ପତ୍ର ଯେସନେ ।

ପଦ ।

ସୁକୁଞ୍ଚିତ କେଶ ବୋଲେ ପଡ଼ିବଟି ପଡ଼ିବଟି ।
ସୁମାର୍ଜିତ ଦନ୍ତ କହେ ନୋହି ଭ୍ରାନ୍ତ ଝଡ଼ିବଟି ଝଡ଼ିବଟିରେ । ୧ ।
ଧମକାନ୍ତ ହସ୍ତ ପଦ ରହିବୁଁଟି ରହିବୁଁଟି ।
ସୁଲଳିତ ମାଂସ ହେବାପାଇଁ ଧ୍ୱଂସ ସଡ଼ିବୁଁଟି ସଡ଼ିବୁଁଟିରେ । ୨ ।
ନାଶା ଥାଇ କହେ ଆଉ ସୁଙ୍ଘିବୁଟି ସୁଙ୍ଘିବୁଟି ।
କର୍ଣ୍ଣ ବୋଲେ ଆଉ ସବୁ ଥାଉ ଥାଉ ଶୁଣିବୁଟି ଶୁଣିବୁଟିରେ । ୩ ।
ଚକ୍ଷୁ କହେ ରହ ରହ ଦେଖିବୁଟି ଦେଖିବୁଟି ।
ମୁଖ କହେ ଭାଇ ଶୁଣ ମନଦେଇ କହିବୁଟି କହିବୁଟିରେ । ୪ ।
ମନ ବୋଲେ ଆଉ ପୁଣି ଚିନ୍ତିବୁଟି ଚିନ୍ତିବୁଟି ।
ବଳ ପଛେ ଥାଇ ଡାକ ଦେଇ ରହି ହଲିବୁଟି ହଲିବୁଟିରେ । ୫ ।

ଏକେ ଏକେ କହୁଛନ୍ତି ସଉନ୍ତି ସଉନ୍ତି ।
ଥିଲେ ପ୍ରଭୁ ସାଙ୍ଗ ଲଙ୍ଘିଯିବୁ ଛାହା—ଭକ୍ତବୃନ୍ଦ ଭକ୍ତବୃନ୍ଦରେ । ୭ ।

—୦ ⁂ ୦—

ଜଣାଣ ।

ରାଗ କଲହଂସ କେଦାର ।

ନମଇ ରଘୁନାଥ ଅଖିଳପତି ।
ଦୀନଜନ-ବାନ୍ଧବ ହର ଦୁର୍ଗତି ଯେ ॥
ପଡ଼ି ମୋହଜାଲରେ ହେଲି ଅଜ୍ଞାନ ।
ନାହିଁ ମୁକତି ତୁମ୍ଭ କରୁଣା ଭିନ୍ନ ଯେ ।୧।
ଧନେ ନ କଲି ତୁମ୍ଭ ନାମ ସ୍ମରଣ ।
ଯଶ କୀରତି ମଧ୍ୟ ନାହିଁ ଅର୍ଜନ ଯେ ॥
କେବଳ ମୋ'ର ମୋର ଲୋଭଧନ୍ଦାରେ ।
ବାନ୍ଧି ପଡ଼ଇ ଖସି ମାୟାଫାସରେ ଯେ ।୨।
କୃପାସିନ୍ଧୁ ହେବାରେ କୃପାପ୍ରଦାନ ।
କର ଉଦ୍ଧାର ଭକ୍ତ ଦୀନଜୀବନ ଯେ ॥
ପୁଣ୍ୟ ଆଲୋକେ ପାପତମିର ନାଶ ।
ତବେ ସ୍ୱରଗରାଜ୍ୟ କର ପ୍ରକାଶ ଯେ ।୩।

—୦୦୦—

ବୈରାଗୀର ଜୀବନଚନ୍ତା ।

ରାଗ କାନଡ଼ାଗଉଡ଼ା ତାଳ ତ୍ରିଗୁଣ୍ଠା ।

ଟଙ୍କାର୍‌ଶବଦ ସମ ଅଟଇ ଏ ଜୀବନ ହେ ।
ଏହି ଅଛି ଏହି ନାହିଁ ଅଦୃଶ୍ୟ ତା ଗମନ ହେ । ପଦ ।
କାହୁଁ ଆସି ଏ ଶବଦ, ହୋଇଛି ଏଡ଼େ ସୁଖଦ ।
କହିତ ନୁହେ ସେ କଥା ବିଲକ୍ଷଣ ଜନମ ହେ ।୧।
ସଂସାର କି ମନୋହର, କରେ ଧ୍ୱନି ନିରନ୍ତର ।

ଶୁଣୁଥିବ କ ବେଗରେ କରୁଁ ୨ ଶ୍ରବଣ ହେ ।୨।
ହେ କରୁଣାମୟ ହର, ଏ ଜୀବନେ କୃପା କର ।
ନିଅ ତବ ସନ୍ନିଧାନେ ଏହି ମୋ ନିବେଦନ ହେ ।୩।



ମନ ପ୍ରତି ବିବେକର ଉପଦେଶ ।
ରାଗ ବସନ୍ତ । ଏକତାଳୀ ।
ଠେଁସି ଗୁଲ ଯା ସଂସାରେ । ରେ ସୁମନ ।
ଠେଁସି ନ ପାରିଲେ ପଡ଼ିବୁ ପଛରେ କ ହେବ ଜନ୍ମ ନ ପାରିରେ
ପଦ ।
ଠକାଠକ କଥା କରିବାର ବୃଥା ଏ ବିଶ୍ୱ ମହାକ୍ଷେତ୍ରରେ ।
ଠକିବୁ ପ୍ରମାଣ ନୁହେ ଏହା ଆନ ଠିକଣା ,ବେଳକୁ ଏଣ୍ଟା ରେ ।୧।
ଠୁଲ କର ବଳ ଚଳା ମନ ଭଲ ଅତି ଉତ୍ତମ କାର୍ଯ୍ୟରେ ।
ଠିକ କର ନିଜ ଆତ୍ମାର ଉନ୍ନତି ପର ଉପକାରବ୍ରତରେ । ୨ ।
ଠାକ କର ଆଗ ହୋଇଣ ସରାଗ ବିଭୂପଦ କଳ୍ପତରୁ ।
ଠୋ କର ଛୁଟିଯିବବେଳେ ପ୍ରାଣ ଧନୁ ଧରନେବୁ ସେ ହାତରୁ ରେ।୩।

---

ଚଲଚିତ୍ତପ୍ରତି ବିବେକର ଉପଦେଶ ।
ରାଗ । ପଞ୍ଚମବରାଡୀ । ତାଳ ବିପୁଞ୍ଜା ।
( ଗୃହଂ ଗୃହଂ ତୋ ଶରଣୀ ବୃନ୍ଦରେ )

ଡର ନାହିଁ ନାହିଁ ତୋର, ପରଧନରେ ନଜର, ଲୁଣ୍ଠିବାକୁ ସଦା ତତପର । ଦେଖିଲେ ଅବଳାପର, କରୁ ମନେ କୁବିଚାର, କର ପୁଣ୍ୟଭାବସବୁ ଦୂରରେ । ଚଲଚିତ୍ତ । ଦେଖି ହେଉଛୁ ମୁଢ ଚକିତ । ଏତେକରେ ନାହିଁତ ବିଦିତ । ପରଧନ ଲୋଷ୍ଟ୍ରଜ୍ଞାନ, ପରଦାର ମାତୃସମ, ପଣ୍ଡିତ ଯେ ଜାଣଇ ନିଶ୍ଚିତରେ । ୧ ।

ପରାପର ଯେଉଁ ଜ୍ଞାନ, ଦିଅଇ ଚହାଇ ଜାଣ, ନିଜହୃଦ କଳୁଷିତ-

ଯାଇ । ସହିଛ ଅପଣା ହିତ, ମନନ ଅଟେ ଅହିତ, କହୁଛ ମୁ ଥରେ ଏହା ଦେହଜରେ । ଚଳଚିତ୍ତ । ଚରାଚର କର • ଆତ୍ମଜ୍ଞାନ । ବସୁଧା କୁଟୁମ୍ବ ପରମାଣ । ପର ଉପକାରବ୍ରତ, କରୁଥାଅ ଅବିରତ, ଜନ୍ମ-ହିତ ହୋଇବ ଜନମରେ । ୨ ।

ଆପଣା ସୁଲଭ ଦୋଷେ, ଦୃଷ୍ଟି ରଖ ନିର୍ବିଶେଷେ, ବଳଗଲେ ନ୍ୟାୟଚକ୍ର ଘୂରା । ଘୁଞ୍ଚାଇ ଦେଇ ଯତନେ, ନ କରଣ କ୍ଷମା ମନେ, ଭୃଙ୍ଗି ଦିଅ ମନବକ୍ରଲୀଳାରେ । ଚଳଚିତ୍ତ । ଇକା ନାହିଁ ଅନ୍ୟଜନ-ଦୋଷ । ଯେଣୁ ଆପେ ତହିଁରେ ସରସ । ଗୁଣାଧାର ଶଶଧର, ଶରୀରେ କଳଙ୍କଗାର, ଦେଖ ଦେଖ ହୋଇଛି ପ୍ରକାଶରେ । ୩ ।

କପଟ ପେଟରେ ରଖି, ଦୋଷ ଖୋଜୁଥାଏ ଲଖି, ଜିହ୍ୱାଅଗ୍ର ମଧୁରଙ୍ଗେ ରଞ୍ଜି । ଯେଉଁ ବନ୍ଧୁର ବେଭାର, ଅଟଇ ଏହୁ ପ୍ରକାର, ଦେବ ଦନେ ଖଳ ଶର ଖଞ୍ଜରେ । ଚଳଚିତ୍ତ । ବୁଝି ସୁଝି ଚଳବୁ ତା ସଙ୍ଗେ । ଶୁଣାଇବ କଥା ନାନାରଙ୍ଗେ । ସଂସାରର ଚମତ୍କାର, କଥା ମଧ୍ୟେ ଏହା ସାର, ରଖିଥିବୁ ତାହାକୁ ଅପାଙ୍ଗେ । ୪ ।

---

ବିବେକବାଣୀ ।

ରାଗ ଚନ୍ଦ୍ରାଦେଶାଖ । ତାଳକିଯୁଠା ।

( ତାବେତ ତାଳକୁ ନାହିଁ ବୃତ୍ତରେ )

ତଳତ ପଡ଼ିବୁ ଭୁଲି ଦନେ ମନେ ନାହିଁ କରେ । ପଦ ।
ଏତେ କର୍ମ୍ମା ଅହଙ୍କାର, ଏତେ ଗର୍ବରେ ଅଧୀର,
ଗଲ ନ ଜାଣି ଅସ୍ଥିର କର୍ମ୍ମାଉଛୁ ମହୀକରେ । ୧ ।
ଧନ ସଙ୍ଗେ ଯିବ ନାହିଁ, ତେବେ କୃପଣ କପାଇ,
ଢୋଷ ସବୁ ବନ୍ଧୁ ଭାଇ ଅସହାୟପ୍ରାଣିକରେ । ୨ ।
ପଦଢଲେ ପ୍ରାଣପ୍ରିୟା ହୋଇ ଅତ ଅସହାୟା,
ଛିନ୍ନ ଭିନ୍ନ କର କାୟା ମାରୁଥିବ ଘାତକରେ । ୩ ।

ଛାଡ଼ି ସବୁ ମାୟା ମୋହ, ନିରଞ୍ଜନେ ଅହରହ,
ଦୃଢ଼ବିଶ୍ୱାସର ସହ ରଖ ଚିତ୍ତ ମସ୍ତକରେ । ୪ ।

---

ଜଣାଣ

ରାଗ ଭୂପାଳି ।

ଅହେ ଦୀନନାଥ । ତବ କୃପା ବିନା ହୋଇଲି ମୁଁ ଅନାଥ । ପଦ
ସାଂସାରିକ ବୃଥା ଆଡ଼ମ୍ବରେ, ଧାବନ କରଇ ମନ ଖରେ,
ସତ୍ପ୍ରବୃତ୍ତିକର୍ମରୁ ହୋଇଣ ବିରତ ବିଡ଼ମ୍ବନାକାର୍ଯ୍ୟେ ସଦାରତ । ୧
ମୋହ ମତ୍ସରତା ମଦ କାମ, ଧରି ଭୟଙ୍କର ରୂପ ମାନ,
ସଦା ଚରିତାର୍ଥ ହେବାକୁ ଉତ୍ସୁକ କରୁଛନ୍ତି ମୋର ପୁଣ୍ୟହତ । ୨
ଏହି ହେତୁ ପ୍ରଭୁ ନିବେଦନ, କରୁଛି ଦିଅ ନିର୍ମଳମନ,
ସଦାବେଳେ ଯେହ୍ନେ ତୁମ୍ଭ ନାମ ଧ୍ୟାନେ ମନ ହେବ ମୋର
ଅନୁରକ୍ତ । ୩ ।

---

ଜଣାଣ

[ ସେ ଶ୍ୟାମସାଗରବର ପ୍ରୀତରେ ମୁଁ ଗଲିଟି ସଇ ବିତିରେ । ]

ତୁମ୍ଭର କରୁଣାବିନା ଗଲି ସିନା ମୁହିଁ ସରି ।
ଜାଣି ନ ଥିଲି ହେ ନାଥ ହେବ ବୋଲି ଏତେ ସରି । ପଦ
ଅହରହ ପାପାନଳ, ଦହଇ ହୃଦ ମୋହର,
ସହି ନ ପାରଇ ଆଉ ଜୀବନ ଯିବାର ପରି । ୧ ।
ହତାଶର ପ୍ରଭଞ୍ଜନ, ଭୟଙ୍କର ରୂପ ଧରି,
ବଢ଼ାଏ ମରମଜ୍ୱାଳା ନ ପାରଇ କେ ନିବାରି । ୨ ।
ସ୍ୱଦେଶେ ବିଦେଶେ ଅବା, ବିଜନକାନନେ ହରି,
ତୁମ୍ଭେ ସୁଖଦୁଃଖକାଳେ ପରିତ୍ରାଣବନ୍ଧୁ ମୋହରି । ୩ ।

ଧନ ପ୍ରାଣ ମନ ବଳ, ଥାଏ ଯେ ପ୍ରେମ ଉଖାଙ୍କୁ,
ଛାହାଠାରେ ବ୍ୟବହାର ଉଚିତ କି ଏକ୍ଷପର । ୪ ।

---

ଜଣାଣ

ରାଗ ବଭାସ ତାଲ କାଓ୍ୱାଲି ।

ଅସ୍ଥି କ ଧରଇ ମନ । ତବ କୃପାବନା ପ୍ରଭୁ କି ଦୁଃଖେ କାଟଇ
ଦନ । ପଦ ।

ଯାହାକୁ କରେ ଆଶ୍ରୟ, ସେ କରଇ ନିରାଶ୍ରୟ,
ନାହିଁତ କେହି ସହାୟ ଭାସଇ କୁଲବହିନ । ୧ ।
ବଷାଦର ତମୋରାଶି, ଦେଇଛି ହୃଦୟ ଗ୍ରାସି
ନ ପାରେ ଅଲୋକ ଅସି ଦଅ ବାରେ ଦରଶନ । ୨ ।
ଯେ କାର୍ଯ୍ୟେ ଦଅଇ ହାତ, ହୁଅଇ ତାହା ଅହତ
ବାଲକ୍ଷଣ ଅଭାଗାତ ରଖ ହେ ବପ୍ନନାଶନ । ୩ ।
ନାହିଁ ଭକ୍ତି ପ୍ରେମଧନ, ଉପହାର ଯୋଗ୍ୟସମ
ଅଛଇ ଶୁଷ୍କଜୀବନ, ଦଅ ହେ ନବଜୀବନ । ୪ ।
ଦେଇ ତବ କ୍ରୋଡ଼ାସନ, କର ମୋତେ ଅଲିଙ୍ଗନ
ଯାଇ ଅଭୟ ଚରଣ ତରବ ହେ ନରଞ୍ଜନ । ୫ ।

---

ଜଣାଣ

ରାଗ କାମୋଦୀ

ଦୟାପ୍ରେମସାଗର, ହେ ମହା ମହେଶ୍ୱର, କରୁଅଛି ମୁ ଏ ବନତ ।
ସୁଦୟା ହୋଇ ବାରେ, କୃପାଦୃଷ୍ଟି ମୋଠାରେ, ପକାଇ ନାଶ ପାପ-
ମତ ହେ । ମହାପ୍ରଭୁ । ଦୀନଜନ-ବାନ୍ଧବପର । କରଛି ତୁମ୍ଭଙ୍କୁ ପସର ।
ହୃଦେ ପୁଣ୍ୟରାଭବ, ଯେସନେ ବରଯିବ, ଏହି ପ୍ରାର୍ଥନା ପର-
ମ୍ପର ହେ । ୧ ।

ଦୀନବାନ୍ଧବ ହର, ଅର୍ତ୍ତନାଶକାର, ବୋଲି ନାମ ବାଜେ ଜଗତେ । ତାହା ସତ କି ମିଛ ଜାଣିବି ଏବେ ସ୍ୱଚ୍ଛ, କଷଟିପ୍ରସ୍ତର ଏ ମୋତେ ହେ । ମହାପ୍ରଭୁ । ହୋଇବ ଯେବେ ଏହା ଅନ । କିମ୍ପା ବୋଲିବ ଅର୍ତ୍ତତ୍ରାଣ । ଦୀନବନ୍ଧୁ ଅବନ୍ଧୁ, ବୋଲି ଜଗତ କାନ୍ଦୁ, କିପିବ ଏହି କଥା ଜାଣ ହେ । ୨ ।

ତାରକାଗଣାବୃତ, ଶଶି ସୌରଜଗତ, ଅନ୍ତର ଭାନୁ ତେଜସ୍କର । ଅସଂଖ୍ୟ ଜୀବାଧାର, ସାଗର ମହୀଧର, ପ୍ରଗଳ୍ଭନ୍ତି ଗୁଣ ତୁମ୍ଭର ହେ । ମହାପ୍ରଭୁ । ହୋଇଲେ ବିଫଳପ୍ରାର୍ଥନା । ମନେ ଏ ଭାବ ହେବ କିନା । ସ୍ୱୟମ୍ଭୂ ଏହିମାନେ, ନାହିଁ କର ତା ଜଣେ, କରିବାକୁ, ପର୍ଯ୍ୟାଲୋଚନା ହେ । ୩ ।

ମୁହିଁ ଅଟେ ପାମର, ନ ଜାଣେ ସୁବିଚାର, କରିଅଛୁ କେତେ ବୃଜନ । ତହିଁନିମିତ୍ତ ରୋଷ, ହେଲେ ଅହେ ପ୍ରାଣେଶ, ରହିବ କେଉଁଠାରେ ପ୍ରାଣ ହେ । ମହାପ୍ରଭୁ । କରୁଛି ବିନୟେ ଜଣାଣ । କ୍ଷମାସାଗର ତାହା କ୍ଷମ । ଦଅ ସ୍ୱଚରିତ୍ରଜ୍ଞାନ, ପାପେ ନ ବଳୁ ମନ, ସତତ ସତ୍ୟେ ରହୁ ଧ୍ୟାନ ହେ । ୪ ।

ଏହି ଭବସାଗର, ହେବାକୁ ହେଲେ ପାର, କର୍ଣ୍ଣଧାରର ପ୍ରୟୋଜନ । ତା ନ ହେଲେ ନାବକୁ, ଅର୍ଣ୍ଣବେ ବୁଡିବାକୁ, ହେବ ନାଶୟ୍ୱ ନିରଞ୍ଜନ ହେ । ମହାପ୍ରଭୁ । କାଣ୍ଡାରୀ ଅଟେ ତୁମ୍ଭ ନାମ । କୃପା ଅଟେ ଅର୍ଣ୍ଣବଯାନ । ତରିବ ସୁଦୁସ୍ତର, ହେଲେହେଁ ପାରାବାର, ନ ଥିବ ଭୟର କାରଣ ହେ । ୫ ।

---

ଜଣାଣ

ରାଗ କୁମ୍ଭକାମୋଦୀ । ଏକତାଳୀ

[ ନୂଆ କଣ୍ଠପଣ୍ଠଣୀ ମୁକୁଟ ବୃତ୍ତରେ ]

ଧନ୍ୟ ପ୍ରଭୁ କାହିଁ ଲୁଚି ଅଛ ହେ ଦେଖାଅ ରୂପମୋହନ ।
ନିକଟରେ ଆଉ ଅନ୍ତର କରାଇ ଦହୁଛ କିମ୍ପା ଜୀବନ । ପଦ ।

ମଳନ ପଙ୍କିଳ ମନ ଦରପଣେ ନ ପଡ଼ଇ ତୁମ୍ଭ ଜ୍ୟୋତି
ପାପୀ ବୋଲି ଯେବେ ଦୂର କରଦେବ ସରଯିବ ଟମା ସଙ୍ଗତି ।୧।
ତୁମ୍ଭ ସଙ୍ଗସୁଖ ବର୍ଜିଲ ଦନୁ ଅରଜଛୁ ଯେଉଁ ଗୁଣ ।
ଛମୁରେ କ ତାହା ଜଣା ହୋଇ ନାହିଁ କହିବ ମୁ କସ ପୁଣି ।୨।
କଏବା ଶୁଣିବ କାହାଟେ କହିବି ହରବ ମୋର ଦୁର୍ଗତି ।
ନଷ୍ଟ ପୁଣ୍ୟମନ ଫେରାଇ କେ ଦେବ କହ କହ ବିଶ୍ୱପତି । ୩ ।
ପତିତପାବନବାନା ଜଗତରେ ଉଡ଼ାଇବା ବ୍ୟର୍ଥ ହେବ ।
ଯେବେ ଅନାଥରେ ନାଥ ଅନାଥରେ କିଛି ମାତ୍ରେ ନୋହିବ ।୪।

---

ପ୍ରେମିକର ଉକ୍ତି ।

ରାଗ ଅଲାହ୍ୟା, ଅଡ଼ତାଳୀ ।

ନାଚରେ ଜଗତବାସୀ ପ୍ରଭୁଗୁଣ ଗାଇରେ, ହରଗୁଣ ଗାଇରେ ।ପଦ।

ଏହି ଯେ କୁସୁମବୃନ୍ଦ, ଅନନ୍ଦେ ଦଅନ୍ତି ଗନ୍ଧ,
ନାଚୁଛନ୍ତି ଉଳ ଉଳ ବଉକୀର୍ତ୍ତି ଗାଇ ରେ । ୧ ।
ଏହି ଯେ ପାଦପସବୁ, ମୋହନମୂରତି ସାଜ,
ପ୍ରକାଶନ୍ତି ତାଙ୍କ କୃପା ଅଙ୍ଗୁଳ ଦେଖାଇ ରେ । ୨ ।
ଏହି ଯେ ସୁମେରୁଗିରି, ଗମ୍ଭୀରରୂପ ମାଧୁରୀ,
ରହିଛୁ ହୋଇଣ ସ୍ଥିର ତାଙ୍କ ରୂପ ଧ୍ୟାୟି ରେ । ୩ ।
ଏହି ଯେ ସୌରଜଗତ, ଭ୍ରମୁଅଛୁ ଅବିରତ,
ଘୋଷଇ ତାହାଙ୍କଗୁଣ ଦନ-ରାତ୍ରି ନେଇଁ ରେ । ୪ ।

---

ଧର୍ମଭାବ ଉଦୟେ ମନର ଖେଦୋକ୍ତି ।

ରାଗ କେଦାର । ଅଡ଼ତାଳ ।

ପଡ଼ିଗଲି ଯେ ଲୋକେ । ଜାଣି ନ ଥିଲି ସେ ବିଶ୍ୱରାଜେ ।ପଦ।
ଲୁଚାଇ ଲୁଚାଇ ତାହାଙ୍କ ନୟନ ଲଙ୍ଘୁଥିଲି କ ସରାଗେ ହେ ।
କାହିଁ ସର୍ବଦର୍ଶୀ ଅନାଥରନାଥ ମିଳିଗଲେ ମୋର ଅଗେ ହେ ।୧।

ବସିଣ ଏକାକୀ ଭାବୁଥିଲ କଷ୍ଟ ନ ପାରଇ ତାହା କହି ।
ଅନ୍ତର୍ଯ୍ୟାମି ଛନ୍ତି ତାଙ୍କ ଦେଲେ ପୁଣି କ ବିଗ୍ଧର କରୁ ତୁହି ।୨।
ଗହନକନ୍ଦରେ ପାପର ସେବାରେ ଅନନ୍ଦରେ ମଜିଥିଲ ଦେ ।
ସର୍ବବ୍ୟାପୀ ଛନ୍ତି ବିରାଜବା ଦେଖି ମଥା ଟେକି ନ ପାରିଲ ଦେ ।୩।

---

## ମୋହଗ୍ରସ୍ତ ଲୋକପ୍ରତି-ବିବେକର ଉକ୍ତି ।

ରାଗ ବସନ୍ତ ।

ଚିନ୍ତିବ ନଷ୍ଟଶ୍ରୀବଦନେ ରେ ବନ୍ଧୁଆ, ସମନ ଅବ୍ୟର୍ଥଶୂଳ ଉଦ୍ୟୁକ୍ତର
ଛୋଡ଼ର ହୃଦଅସନେ । ପଦ ।
ନୁହେ ପକ୍ଷପାତୀ, ନ୍ୟାୟପର ଅତି, ସେ ବିଷମ ମହାଶୂଳ ।
କି ରାଜା-ପରଜା, ସବୁଠାରେ ସମା, କେହି ନ ଯିବେ ତା ବଳରେ ।୧।
ଗହନବନରେ, ଗମ୍ଭୀରସାଗରେ, କି ଅବା ସ୍ୱର୍ଣ୍ଣପ୍ରାଚୀରେ ।
ହେଲେ ଲୁକ୍କାଇତ, ନ ଛାଡ଼ିବ ପାଛ, ପୋଚଯିବ ମୂହୁର୍ତ୍ତରେ ରେ ।୨।
ବାଞ୍ଛିବ ନକର, ଉଦ୍ୟ କର୍ମ କର, କିନ୍ତୁ ଅଛରେ ଉପାୟ ।
ନ ବାଧିବ କଷ୍ଟ, ପାଉଥିଲେ ସଙ୍ଗ, ପ୍ରଭୁଚରଣ ଆଶ୍ରୟ ରେ ।୩।

---

## ବିବେକର ଉକ୍ତି ।

ତାଳ କ୍ଷେମଣ୍ଟା ।

[ ମାଧବ ହେ, ନ ବୁଝିଲି ମନ ତାର ବଉରେ ]

ବହୁଦିନୁ, ନ ବୁଝିଲୁ ମନ ମୋର ।
ଯେତେ ବୁଝାଇଲେ ପାପ କରୁ ବାରଂବାର । ପଦ ।
କାମଚକ୍ରେ ପଡ଼ି, ଧର୍ମ କର୍ମ ଛାଡ଼ି, ମଣିଲୁ ଅସାର ସାର ।
ରମଣୀଅନନେ ଦେଖୁ ସ୍ୱର୍ଗର ଦୁଆର । ୧ ।
କ୍ରୋଧପରବଶେ, କ୍ଷଣସୁଖ ଆଶେ, ଉଚ୍ଛନ୍ନ କଲୁ ଅନ୍ୟର ।
ସତ୍ୟ ଜୟପର କର ଗାରମା ପ୍ରଚାର । ୨ ।

ଲୋଭପ୍ରଭାବରୁ, ବ୍ୟସ୍ତ ନ କରୁ, ଲୁଣ୍ଠୁ ବଉ ଯ'ର ଧାର ।
ସେ ପୁଣି କି କେବେ ଭୋଗ ହୋଇନ ଭୋହନ୍ତି ।୩।
ମୋହପହରଣେ, ଅଜ୍ଞାନ ଆମ୍ଭନେ, କନ୍ତୁ ସର୍ବ ତମାର ମୋର ।
କାଟି ସେ ତାଙ୍କୁଣି ହନେ ନ ଦେଖୁ ଉତର ।୪।
ଧନ ଯଉବନ, ପ୍ରଭୁତ୍ୱର ଯାନ, ଚଢ଼ି ଗର୍ବେ ବୁଲବାର ।
ହଳ ହେଉ କେତେ ପ୍ରାଣୀ ନ କର ବଗ୍ଭର ।୫।
ହିଂସାନଳେ ପଡ଼ି, ଯାଉ କପାଁ ପୋଡ଼ି, ଶିଖି ନ ଦେଖି ଲୋକର ।
କ ମଳନ କରୁ ନଜ ମୂରତ୍ତି ସୁନର ।୬।
ମାଦକସେବନ, କର ଅଚେତନ, ଲୁଣ୍ଠିଲ ଜ୍ଞାନଭଣ୍ଡାର ।
ନ ଶୁଣିଲ କଥା କରୁ ଏକ ଭଯ୍ୟଙ୍କର ।୭।

---

କଣାଣ ।

ସ୍ୱଗ ଝିଂଝୁଟି ତାଲ ଏକତାଲୀ ।

ଭଜ ରୁ ମନ ଦେବଦେବ ଅମୃତର ଅଧିକାରକୁ
ବପଦଭଞ୍ଜନ ପତିତପାବନ ନଖିଳନଧାନ ହରକୁ । ପଦ ।
ରବ ଶଶି ତାର୍ ଗ୍ରହ ଉପଗ୍ରହ
ଯାହାଙ୍କ ବନ୍ଦନେ ନ କର ବଗ୍ରହ ?
ଦେଉଛନ୍ତ ଜ୍ୟୋତ ଭୂମୂଳନ୍ତ ନଡ଼ ପାଳପଣ ସେବାବ୍ରତକୁ ।୧।
ସୁଖେ ବସି କୁଞ୍ଜେ ଡାକେ ପକ୍ଷିମାନେ
ଗାଉଛନ୍ତ କୀର୍ତ୍ତି ତତ୍ତ୍ୱହସ୍ୱନେ
ଗନ୍ଧସମୀରଣ ଗ୍ରମରବ୍ୟଜନେ ତୋଷୁଅଛଇ ଯାହାକୁ ।୨।
ଷଡ଼ଋତୁମାନେ ଯାହାଙ୍କ ଅଜ୍ଞାରେ
କ୍ରମଅନୁସର ବୁଲନ୍ତ ସଂସାରେ
ଏମହାମଣ୍ଡଳ ଫଳପୁଷ୍ପଭରେ ପୂଜେ କେତେ ରଙ୍ଗେ ତାହାକୁ ।୩।
ସେଦେବ ଶ୍ରମୂର୍ତ୍ତେ ରହ ନଜପଦ

କୁର ସେବା ଯେତେ ଦେଇ ଭକ୍ତି ପ୍ରେମ
ନ ରହିବ ଦୁଃଖ ଅନ୍ଧକର ସୁଖ ଦେବେ ନିଶ୍ଚେ ଭକ୍ତପ୍ରାଣକୁ ।୪।

---

ମନପ୍ରତି ବିବେକର ଉକ୍ତି ।
ରାଗ କାମୋଦୀ ।

ମନ ଅରେ । ଏସଂସାର ଖେଳଘର । ଜୀବତ ପିତୁଳା
ନାଚୁଛନ୍ତି ସିନା ଭିଏ ଏକ ଘର । ପଦ ।
ଈଶ୍ୱର ଦର୍ଶକ, ମାନବ ନର୍ତ୍ତକ, ନିଜେ ତୁହି ଯନ୍ତ୍ରଧାରୀ ।
ଅଖିଳସଂସାର ଅଟେ ରଙ୍ଗଭୂମି ରିପୁ–ବନ୍ଧୁସଙ୍ଗେ ଧରି ।୧।
ଧନୀ ମହାରାଜା, ଜମିଦାର ରାଜା, ସୁଅଙ୍ଗିଅ ଏ ସକଳେ ।
ଗଲାବେଳେ ଲୋକେ ଜାଣିବାର ପାଇଁ ଖେଳୁଛନ୍ତି ଝଲମଲେ ।୨
ଭଣ୍ଡ ବଇରାଗି ଯୋଗୀବେଶ ସାଜି ଛନ୍ଦ୍ରା ହୋଇଅଛି ଦୂରେ ।
ହୃଦୟଗହ୍ୱର ପୂରାଇ ରଖିଛି କେତେ ପାପ ଗୁପତରେ ।୩।
ଏସବୁ ଅନିତ୍ୟ ପ୍ରଭୁନାମ ସତ୍ୟ, ମନ ବୁଝ ତୁ ଏତେକ ।
ଉଲବମ୍ବପରି ଅଭିସନ୍ଧି ଯେତେ ଖସିବେ ଏକକୁ ଏକ । ୪ ।

---

ବିବେକର ଉକ୍ତି ।
ଝେମଣ୍ଟା ।

ଯଉବନ-ଗରବରେ କି କରୁଅଛ ରେ ।
ଅମରପଥ ସଦା ଦିନ ହରୁଛୁ ରେ । ପଦ ।
ଯେ ଦିଅଇ ଉପଦେଶ, କରୁ ତାର ଉପହାସ,
ପାଶବ–କାର୍ଯ୍ୟକୁ ଭଲ ବୋଲି ଜାଣୁଛ ରେ । ୧ ।
ମୂର୍ଖସମାନ ଜ୍ଞାନୀଙ୍କୁ, ପଣ୍ଡିତରେ ଆପଣାକୁ,
ଧର୍ମଭାବନାକୁ ଚିତ୍ତଭ୍ରମ ବୋଲୁଛ ରେ । ୨ ।
ଯାହାକୁ ତୁ କହୁ ମୋର, ଯେ କହଇ ମୁଁ ତୋହର,

ସେହିତ ହୋଇବ ପର ନ ଦେଖୁଅଛୁ ରେ । ୩ ।
ଏହି ସୁନ୍ଦର ଶରୀର, ଯାହାକୁ ସ୍ନେହ ଅପାର,
ହେବ ଭସ୍ମ ଦିନେ ଜାଣି, ନ ଜାଣୁଅଛୁ ରେ । ୪ ।
ଦୁଃଖର ସନ୍ତାପହାରୀ, ଆନନ୍ଦମୟ ସେ ହରି,
ସଙ୍ଗକୁ ଛାଡ଼ିଣ କପାଁ ଦିନ ହରୁଛୁ ରେ । ୫ ।

---

## ଜଣାଣ ।

### ରାଗ କାଶ୍ମୀରୀ ଖେମଟା ।

ରଖ ରଖ ରଖ ରଖ, ଦୀନଜନ ପ୍ରାଣବନ୍ଧୁ,
ପତିତ ଡାକଇ ବାରେ କୃପା କର କୃପାସିନ୍ଧୁ । ପଦ ।
ସୁଖମୟ ଏ ସଂସାର, ଦିଶଇ ଦୁଃଖଆଗାର,
ତୁମ୍ଭର କରୁଣାବିନା ହେ ନାଥ କରୁଣାକର । ୧ ।
ବିପଦ ରୋଗାଦି ଘୋର, ରହିଛି ପ୍ରାଣ ଆବୋରି,
ହେଲେ ତୁମ୍ଭ କୃପା ନାଥ ହଳାହଳ ସୁଧାପରି । ୨ ।
ଅସହାୟ ସନ୍ତାନର, ତୁମ୍ଭେ ହେ ପିତା ସମ୍ବଳ,
କାହାକୁ କହିବ ପ୍ରଭୁ ହୋଇଛୁ ଅତି ଅକୁଳ । ୩ ।
ହୋଇଛି ନିୟମ ଯେଣୁ, ରଖିବାକୁ ହେବ ତେଣୁ,
ଏହି ବାକ୍ୟ ଅନୁସରି ଡାକଇ ପାପଭୁବନୁ । ୪ ।

---

## ଭକ୍ତର ଉକ୍ତି ।

### ରାଗ ଏମନକଲ୍ୟାଣ ଆଡ଼ାତାଳ ।

[ ସୁପନେ ଅଛ ବେଳେଜାଳ ନବ ବୃନ୍ଦରେ ]

ଲୟ ମୁଁ ସଦା ସଚ୍ଚିଦାନନ୍ଦ ତୁମ୍ଭରେ ରଖିଲି ହେ । ପଦ ।
କାହିଁ ତହିଁ ପରାପର, କି ଶୋଭା ସେ ଦେବପୁର,
ଦୟା-ସ୍ନେହର ଆକର ଦେଖି ଛାଡ଼ି ନ ପାରିଲି ହେ । ୧ ।

ବନ୍ଧୁଛ ଅମୃତଝର, ବନ୍ଧାର ଭକ୍ତଜନର,
ଶୋକ ଦୁଃଖରେ ଅଛୁର କେହି ଜଣେ ନ ଦେଖିଲ ହେ ।୨।
ଜ୍ଞାନର ଆଲୋକମୟ, ଦେଖି ଅସ୍ଥିର ହୃଦୟ,
ଘର-ଦ୍ୱାର କର ଦୂର ତାଙ୍କ ଚରଣ ସେବିଲ ହେ । ୩ ।

———

ମନପ୍ରତି ବିବେକର ଉକ୍ତି ।

ରାଗ ଲକ୍ଷ୍ନୌ ଠୁମ୍ରି ।

ବିଭୁନାମ ଅଟେ ସୁରଭି ଉଦ୍ୟାନ ।
କର ରେ ମନଭୃଙ୍ଗ ତହିଁ ଭ୍ରମଣ । ପଦ ।
ଗୁଣୁ ଗୁଣୁ ସ୍ୱରେ ମକରନ୍ଦ ପାନ ।
କର ମୋହକର ଏ ପାପଜୀବନ । ୧ ।
ଭକ୍ତିପୁଷ୍ପ ଯେବେ ହେବ ଆସ୍ୱାଦନ ।
ଦେଖିବୁ କପର ସେରୂପ ମୋହନ । ୨ ।
ପ୍ରେମସରୋବରେ ଅବଗାହନ ।
କଲେ ଭବତାପ ହୋଇବ ମୋଚନ । ୩ ।
ହଜାଇବୁ ପଥ ଦେଖିଲେ କୁସୁମ ।
ମଦ ମୋହ କ୍ରୋଧ ମତ୍ସରତା କାମ । ୪ ।

———

ଧର୍ମଜୀବନର ଈଶ୍ୱରଙ୍କ କାର୍ଯ୍ୟରେ
ସର୍ବତ୍ର ମଙ୍ଗଳଦର୍ଶନ ।

ରାଗ ଶୋକବରାଡ଼ୀ ।

( ମାଧବ, ବଟେ ବ ଫେଇଦେଖିବ ଦ୍ୱାରେ)

ଶଙ୍କର । ମଙ୍ଗଳ ତୁମ୍ଭେ ଯା କର । ପଦ ।
ମଙ୍ଗଳମୟ ନାମ, ମଙ୍ଗଳମୟ ଧାମ,
ବୃଷ୍ଟି ନ ପରେ ଅନ୍ତର ହେ । ୧ ।

କାର୍ଯ୍ୟେ ହେଲେ ବ୍ୟାଘାତ, ଉଚ୍ଛନ୍ନ ହୁଏ ମନ,
ଦଶଇ ସିନା ଅନ୍ଧାର । ୨ ।
କୁଳଶ ତପନରେ, ପ୍ରାଣ ଆକୁଳ କରେ,
କିନ୍ତୁ ସେ ମଙ୍ଗଳକର । ୩ ।
ଅକାଳେ ଗଲେ ପ୍ରାଣ, ଜାନନ୍ତି ତବ ନାମ,
ମାତ୍ର ଏ ଭ୍ରମ ଜନର । ୪ ।
ଅଭୂତକାର୍ଯ୍ୟଚୟ, ଦଅଇ ପରଚୟ,
ମଙ୍ଗଳଇଚ୍ଛା ତୁମର । ୫ ।

---

## ଦୁଃଖିର ଜଣାଣ ।

### ରାଗ ପୁନାଙ୍ଗ ଆଡ଼ତାଳୀ ।

ସଂସାର କି ଭୟଙ୍କର ହେ ମହେଶ ଜାଣିନ ନ ଥିଲି ଏପ୍ରକାର । ଦହୁ ଦହୁ କେଳ *ଅନଳରୁ ବନ ଦଶିଲି ମୋ ନେତ୍ରେ ଖର-ତର । ପଦ ।

ଚନ୍ଦ୍ରସୁଧାକର, ସାଂଘାତକଶର, ହୋଇ ବିନ୍ଧେ ମୋର ବକ୍ଷେ ନିରନ୍ତର ।
ହାସ-ପରିହାସ, ହେଲାଣି ବିନାଶ, କାନ୍ଦି ନ ପାରଇ ମୋ ଅନ୍ତର ।୧।
ଜହ୍ଵରକୁ ଗୋଳ, ଦେଲାପର ଗିଳ, ଉଦରରେ ଅନ୍ନ ନ ପାରେ ସମ୍ଭାଳ ।
କୁସୁମ-ଚନ୍ଦନ, ଶୀତଳପବନ, ହୋଲାମାତିବାକୁ ହେଲେ ସାର । ୨ ।
ଯାଇଣ ଆନନେ, ସୁଖ-ଅରବିନ୍ଦେ, ଅନାଇ ମୁଁ ଗଲୁଥିଲି ମନ୍ଦେ ।
ଅକାଳଶିଶିର, ପଡ଼ି ତା-ଉପର, ନାଶିଲା ମୋଗତି ଚିରତର । ୩ ।
ହେଲି ଅସମ୍ଭାଳ, ନାହିଁ ହେ ସମ୍ବଳ, ଜୀବନଲତିକା ଲୋଟେ ମହୀତଳ ।
ଜଣାଇବି କିସ, ହେଲି ମୁଁ ନିରାଶ, ହେଉ ଇଚ୍ଛା ଏବେ ପୂର୍ଣ୍ଣ ତୋର ।୪

---

* ନଷ୍ଟାପ ଅନୋଦ ପ୍ରମୋଦ ଭବନେ କେଳଃଦ ପ୍ରବୋଶ ହୋଇଛନ୍ତି ।

ସାଧୁଜୀବନ-ଦର୍ଶନେ ମନର ପ୍ରଫୁଲ୍ଲତା ।

ରାଗ ଅନନ୍ଦଭୈରବ । ତାଳ ଆଡ଼ତାଳ ।

[ ହେଲ ତୋ ସ୍ନେହରେ କଣା ବୃତ୍ତରେ ]

ଷଟ୍‌ପଦ ପରସ୍ପେ ଗୁଣ ହେ ସାଧୁ ପ୍ରବୀଣ । ପଦ ।

କଲକଣ୍ଠ କାଣା ଜଣା ସ୍ୱଜନସମ ମନ କଣା

ମଣେ ତବ ଗିର ଉଚ୍ଚାରଣ ହେ । ୧ ।

ସର୍ବ କୁସୁମ ଚୟରୁ ଅଳମଧୁସଞ୍ଚୟରୁ

ଶିକ୍ଷିଛ ନୀଭ ମଧୁଗ୍ରହଣ ହେ । ୨ ।

ଯଥା ମଧୁ ଉପକାରୀ ତଥା ବଚନ ଭୂଷିରେ

କ କହିବ ସ୍ୱର୍ଗୀୟ ଅର୍ପଣ ହେ । ୩ ।

ଅନୁତାପ

ତାଳ ଅଡ଼ତାଳ

[ କଣ୍ଠେ ମୂଲ୍ୟ ବାକୁଛ ବଡ଼େ ]

ହୃଦ ଫାଟି ମୋ ଯାଉଛି ।

ପ୍ରାଣନାଥ ହୃଦକୁ ଯେ ବିରଜ ହୋଇଛି ।

ପ୍ରେମ-ଯମୁନାପୁଳନ ମଳିନଦଶୁଛି ।

ସୁଖ-ତରୁ ଠାବେ ଠାବେ ଉଲଟି ପଡ଼ିଛି । ୧ ।

ଦେହ-ବୃନ୍ଦାବନ ମୋର ଅଶୋଭି ହୋଇଛି ।

ବିଶ୍ୱାସ-କଦମ୍ବ-ମୂଳେ ଛାଡ଼ା କେ ହୋଇଛି । ୨ ।

ଦୟା-କ୍ଷମା-ଆଦ-ଶୋଭି ବଜାର ପଡ଼ିଛି ।

ଯାତାୟାତ ନାହିଁ ତହିଁ ପଙ୍କିଲ ହୋଇଛି । ୩ ।

ପବିତ୍ରଲୀଳା-ଚନ୍ଦ୍ରମା ଉଦେ ହୋଇଅଛି ।

ଯାପଗନ୍ଧ ପୂର୍ଣ୍ଣିମାସେ ଅନ୍ଧାର କରଛି । ୪ ।

କ କରବ ନାହିଁ ଯିବ ବୁଦ୍ଧି କ ଦଶୁଛି ।

ଅନୁଗ୍ରହ-ମୁରଳୀକୁ ଗ୍ରହି ବସିଅଛି । ୫ ।

ଭକ୍ତର ଶେଷଦଶାର ଜଣାଣ ।

ରାଗ ଝିଂଝୋଟି । ଆଡ଼ା ଏକତାଳ ।

[ ଅଚଣୀକୁସୁମସମ ବୃତ୍ତରେ ]

କ୍ଷମାସାଗର ହେ କ୍ଷମ ସଂସାରୁ ମୁଁ ଗଲଣି । ପଦ ।
ସଂସାରର ଲୀଳାହାର, ଥିଲା କଣ୍ଠ ମୋ ଉପର,
ହୋଇଛି କି ଅଭିମତ ଏବେ ତା ସାରିଲଣି । ୧ ।
ରଖିବାକୁ ଏ ଜୀବନ, ଯା କରୁ ଅବଲମ୍ବନ,
ହେଉଥିଲୁ ପ୍ରାଣେଶ୍ୱର ! ସବୁ ମୁଁ ଛାଡ଼ିଲଣି । ୨ ।
କ୍ରମେ କ୍ରମେ ଅବୟବ, ହୋଇ ଆସଇ ନିର୍ଜୀବ,
ଦେଖା ଏବେ ବ୍ରହ୍ମଜ୍ୟୋତ ଶରଣ ପଶିଲଣି । ୩ ।

---

